# ଭଜନ ସଙ୍ଗୀତ

ପଣ୍ଡିତ ଶ୍ରୀଚନ୍ଦ୍ରଶେଖର ମିଶ୍ର




ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ବର

# ଭଜନ ସଙ୍ଗୀତ

## ଭକ୍ତ ରସାଶ୍ରିତ

୧

ରାଗ-କାମୋଦୀ

( ଦେଖାଇ ଆମ୍ଭେ ଯେବେ କହିଲୁ 'ଗୋ ।

ଏହି ବୃତ୍ତରେ

ଅଖିଳ ଜଗତର କାରଣ ହେ,
ରଖିଲ ନକ୍ର (୧) ମୁଖୁ ବାରଣ (୨) ହେ,
ଦ୍ରୁପଦ ସୁତା ଡ଼ାକେ ଶୁଣିବାର ମାତ୍ରକେ
ହୋଇଲ ତାଙ୍କ ଦୁଃଖ ବାରଣ ହେ । ପଦ ।
ଭକତ ସୁଜନ (୩) ନିଚୟ ପ୍ରାଣମନ
ସମ୍ଭୃତ ଭବତାପ ବାରଣ ହେ,
ସେବକ ସର୍ବନାଶି (୪) ଗୁରୁ ଦୁରିତ ରାଶି
ପ୍ରବଳ ଦନ୍ତ-ସୁନ୍ଦ ମାରଣ ହେ ।୧।

---

୧—କୁମ୍ଭୀର । ୨—ହସ୍ତୀ । ୩—ଭକ୍ତଗଣଙ୍କର ପ୍ରାଣ ଓ ମନରୁ ସାଂସାରିକ ଅଜ୍ଞାନ ବିନାଶକାରୀ । ୪—ଭକ୍ତମାନଙ୍କର ସର୍ବନାଶକାରୀ ଯେଉଁ ଗରିଷ୍ଠ ଦୁରିତ ସମୂହ ସେମାନେ ପ୍ରବଳ ରାକ୍ଷସ ତୁଲ୍ୟ, ସେମାନଙ୍କର ହତ୍ୟାକାରୀ ।

ଘୋର ବରଷାକୁଳ— ଗୋକୁଳ ଜନକୁଳ
ରକ୍ଷଣ ଗୋବର୍ଦ୍ଧନ-ଧାରଣେ ହେ,
କରକା (୫) ପାତ ସହ ବର୍ଷ କ (୬) ବାରିବାହ (୭)
ଆସାର ତତ୍ୱ (୮) ଅପସାରଣ ହେ ।୨।

ନୃହରି ରୂପଧରି ସ୍ତମ୍ଭ ମଧ୍ୟୁ ବାହାରି
କଲ ହିରଣ୍ୟବକ୍ଷ ଦାରଣ ହେ,
ହରି ନାମରେ ରତ ପ୍ରିୟତମ ଭକତ
ପ୍ରହ୍ଲାଦ ଭୟ ଅପହାରଣ ହେ ।୩।

ତବପ୍ରତି ଅଟଳ ଭକତିରୁ କେବଳ
ହେଲ ଗୋପିକା ମନୋହରଣ ହେ,
ଗୋପ ବାଳକ ମେଳେ ତାଙ୍କ ସେନେହ ବଳେ
ହୋଇଲ ଗୋପେ ଧେନୁ ଗୃହଣ ହେ ।୪।

ସୁହୃଦ ଭାବେ ସେହି ଥିବାରୁ ଅନୁଭବ
ହେଲ ପାଣ୍ଡବେ ଉପକାରଣ ହେ,
ପ୍ରଭୁ କରୁଣାକର ହୁଅ ଚନ୍ଦ୍ରଶେଖର-(୯)
ଭବ ବନ୍ଧନ ତାପ ସାରଣ ହେ ।୫।

—X—

---

୫-କୁଆପଥର । ୬-ବର୍ଷଣକାରୀ । ୭-ମେଘ । ୮-ଧାର, ଅସର । ୯- ଚନ୍ଦ୍ରଶେଖର ନାମକ କବିର ସଂସାର ବନ୍ଧନ ଦୁଃଖ ହରଣକାରୀ ।

# ୨

## ସ୍ୱଗ ଚୋକ୍ତିପରକ
(ଗଲଣି ତ ଗଲ କଥାରେ ସଙ୍ଗୀତ)

ଏକ୍ୱ ବୃତ୍ତରେ

ହେଲଣିତ ଯାହା ହେଉ ହେ ପ୍ରାଣେଶ,
ତବ ନାମ ଗାନେ ମହ୍ୱମା ଧିଆନେ,
ମୋର ଏ ଜୀବନ ଯାଉ । ପଦ ।
ମୁନିଜନମନ-ନିବାସର ସ୍ଥାନ
ତବପଦେ ଶତ୍ରୁ ରହୁ ।
ସର୍ବ ପାପନାଶି-ପ୍ରସାଦ ତୁଳସୀ
ମୋର ଶିର ସଦା ବହୁ । ୧ ।
ବିବୁଧ ବାଞ୍ଛିତ-ତୁମ୍ଭ ପଦାମୃତ
ମୋହର ରସନା ଗୃଣୁ ।
ପଦ ଅରବିନ୍ଦେ-ତବ ମହାନନ୍ଦେ
ମୋ ମାନସ ଭୃଙ୍ଗ ଲଣ୍ଡୁ । ୨ ।
ସୁଜନ ସଙ୍ଗତେ-ଭବସିନ୍ଧୁ ପୋତେ
ଲଭିବାକୁ ଅବସ୍ଥିତ ।
କଦାପି ବିମୁଖ-ନୋହିଲେ ଅଲେଖ
ସତତ ବଳୁ ମୋ ମତ । ୩ ।
ମୁହିଁ ମନ୍ଦବୁଦ୍ଧି ସଂସାର ବାରିଧି
ତରିବାକୁ ନ ଜାଣଇଁ ।
କରୁଣା ତରଣୀ ଲଗାଇ ସରଣି
ବଢ଼ାଅ କମଳା ସାଇଁ । ୪ ।

ବିଷୟରେ ରତ-ଦ୍ୱିଜଚନ୍ଦ୍ର, ଚିତ୍ତ
ଅସଦ୍ଭାବାଟେ ଭ୍ରମଇ ।
ଜୀବନ ଗହନେ— ପଥ ଦୟା ମନେ
ଦେଖାଅ ସେତୁ ନମଇ ।୫।

୩

ରାଗ—କେଦାର
( ଖରାପ ତୁ ହେଲୁରେ )
ଏହି ବୃତ୍ତରେ ।

ମୋ ଜୀବନ ବୃଥାରେ

ଭାବି ଭାବି ହେଲମନ    ତୋ ଅମାନ୍ଧ କଥା ରେ । ପଦ ।
ଅସାର ବିଷୟ ଜଳେ    ମଜ୍ଜିଲୁ ତୁ ଯଥା ରେ ।
ହରି ମଦାମୃତ ରସ    ନ ଗୃହିଲୁ ତଥା ରେ ।୧।

ଭବ ସାଗର ତରଣେ    ନ ଜାଣିଲୁ ପ୍ରଥା ରେ ।
ବନ୍ଧୁକୃପା ନାବ ବିନା    କାଏ ସମ ରଥା ରେ ।୨।
ଘୋର ଦୁଃଖ ଜାଲେ ପଡ଼ି    ମାରନ୍ତୁ ତୁ ବ୍ୟଥା ରେ ।
ତଥାପି ଗୋବିନ୍ଦ ପାଦେ    ନ ଲଗଇ ମଥା ରେ ।୩।

ଡାକିବାରୁ ନିରନ୍ତର    ହରିଗୁଣ ଗାଥା ରେ ।
ବିପଦ ସାଗର ଗର୍ଭେ    ତରିଲେହି ପୃଥା (୧) ରେ ।୪।

କୃଷ୍ଣାଙ୍କ କୃଷ୍ଣାଙ୍କ ତୋଟେ    ହେଲାବି ମୁଁ ଅଥା ରେ (୨) ।
ଜଗେ ବନ୍ଦ, କୃଷ୍ଣ ଆଉ    ଏବେ କେ ନଥା ରେ ।୫।

—X—

୧—କୁନ୍ତୀ । ୨—ଅସ୍ଥିର ।

# ୪

## ରାଗ— କାମୋଦୀ

ଭଜ ମାନସ ହରି ପାଦଙ୍କୁ ରେ
ସତତ ଗାଅ ସୁଭ ବାଦଙ୍କୁ ରେ
କେଶଆଅ ଶ୍ରବଣ          ସାବଧାନ ହୋଇଣ
ବଳ୍ପଗୁଣ କୀର୍ତ୍ତନ ନାଦଙ୍କୁ ରେ । ଘୋଷା ।
ହୃଦେ ବିଶ୍ୱାସ ଭର          ଭବ ବାରିଧି ତର
ନଗୃହ ବୃଥା ଯୁକ୍ତି ବାଦଙ୍କୁ ରେ ।୧।

ଭ୍ରମର ରୂପେ ଲଖ          ଅନବରତ ଗୃଖ
ସେ ପଦକଞ୍ଜ-ମଧୁ ସ୍ୱାଦଙ୍କୁ ରେ ।
ମୂଢ଼ ପଣରେ ପିଢି          ଲଭ ଥିବାର ବୁଦ୍ଧି
ଏତେକୁ ଅପବାଦଙ୍କୁ ରେ ।୨।

ଦୃଢ଼ ବିଶ୍ୱାସୁଁ ପରା          ଭକ୍ତ ମୋଦ ପସରା
ତାରିଲେ ହେଲେ ପ୍ରହ୍ଲାଦଙ୍କୁ ରେ ।୧।

ଭ୍ରମର ରୂପେ ଲଖ          ଅନବରତ ଖ
ସେ ପଦ କଞ୍ଜ ମଧୁ ସ୍ୱାଦଙ୍କୁ ରେ ।
ମୂଢ଼ ପଣରେ ପିଢି          ଲଭଥିବାର ବୃଦ୍ଧି
ଏତେକୁ ଲୋକ ଅପବାଦଙ୍କୁ ରେ ।୨।

ପର ଲୋକଙ୍କେ ଘୋର          ନରକ ବାସ ଡୋର
ହେବାର ହେଲ ପରମାଦଙ୍କୁ ରେ ।
ବକ୍ଷସ୍ଥ ବାଣପୁରେ (୪)          ସନ୍ତ୍ରୀରଙ୍କ ବଧିରେ
ହେଲ ଭ୍ରାନ୍ତ ଉନମାଦଙ୍କୁ ରେ ।୩।

---

୪ — ପ୍ରବାହରେ ।

କାମ ଲେଉରେ ବୁଡ                    ଚତୁରପଣେ ଶାଢ଼ୀ
ବାନ୍ଧିବା ଗୁଡ଼ ବିସଂବାଦକୁ (୫) ରେ
ଧନ ମଦରେ ପଡ                    ସୁଜନ ସଙ୍ଗ ଏଡ
ଲଭିଲୁଣିତ ଅବସାଦକୁ ରେ ।୪।
ଯାହା ହେବାର ହେଲା                    ମୋ ବୋଲ କର ଭଲା
ବୋଇଲେ ଚନ୍ଦ୍ରଶେଖର ହାଦକୁ (୬) ରେ
ଧର ଭବସାଗର                    ପାର ହେବାର ସାର
ଶ୍ରୀହରି ନାବକ ପଦକାଦକୁ (୭) ରେ ।୫।

—○—

୪

ରାଗ—ଝୁଲା
(ଭର ନାହିଁକ ହେ ପରଚରଣୀ ହରଣ୍ଡ)
ଏହି ବୃତ୍ତରେ

ମନ ତୁ ପରା ରେ                    ଜନ ଇନ୍ଦ୍ରିୟଙ୍କ ଗୁରୁ,
ତୁ ନ ଶିଖାଇଲୁ                    ଶିଷ୍ୟଙ୍କୁ, ଦେଉଛୁ
ସ୍ୱାନ ପଶୁପରି ସ୍ତ୍ରୀତ୍ର । ପଦ ।
ବନ୍ଧୁଗୁଣଗାନ ମିଳନ କୀର୍ତ୍ତନ                    ଶୁଣାଅ ମୋ ଶ୍ରୁତିପୁଟେ,
ପ୍ରସାଦ ତୁଳସୀ ତାସ ପରଶଂସି                    ଶୁଂଘାଅ ମୋ ନାସାପୁଟେ ।୧।
କାଳନ୍ଦୀର କୂଳେ ଗୃହଚନ୍ଦ୍ର ଚଳେ                    ମୋ ଅକ୍ଷି ଯୁଗଳ ଲଗୁ,
ହରି ପଦ୍ମପାଦ ମଧୁର ଆସ୍ୱାଦ                    ନୋହିର ରସନା ଗୃଧ୍ନୁ ।୨।

---

୫—ପ୍ରତାରଣା । ୬—ବର୍ତ୍ତମାନ । ୭—ନୌକା । ଚଳାଉଥିବା ବାଳିଶ ।

ଗୋବିନ୍ଦର ନାମ ଗାନେ ପୂରୁ କାମ    ମୋ ତୁଣ୍ଡର ହେବା ଜାଣ
ଭକତ ନିକର ପାଦ୍‌ଧୂଳି ମୋର    ମସ୍ତକରେ ଯାଉ ମିଶି ।୩।

ସୁନୀଳ ଶୈଳର ମଧ୍ୟକୁ କେବଳ    ଧାଅନ୍ତୁ ମୋ ଦୁଇପାଦ,
ଜଗନ୍ନାଥ ମୁଖ ଚନ୍ଦ୍ରମା ମୟୂଖ    ନିରେଷି ଲଭନ୍ତୁ ମୋଦ ।୪।

ଅବନତ ଶିରେ ପ୍ରଣାମ ବଧିବେ    ଯୋଡ଼ାଏ ମୋ ଦୁଇ କରେ,
ଦ୍ୱିଜଚନ୍ଦ୍ର ବୋଲେ ମାଡନ୍ତୁ ଲୁ    ଉଠଲ ଅଶେଷ
ଆନନ୍ଦ ଭରେ । ୫ ।

—:୦:—

# ୭

(ଧୀର ସମୀରେ ଯମୁନା ତୀରେ)
ଏହି ବୃତ୍ତରେ

ଭୋଗବିଳାସେ ସନ୍ତତ ଭାସେ ମନୁଜ ମନେ ନ ବିଚାରେ ।
ମନ୍ଦ କରମ କରି ଗର୍ବ ଭରେ ଭରି ନିଜ ବନ୍ଧୁ ଆୟୁଷ ସାରେ ।ପଦ।

ପୂର୍ବ କର୍ମଫଳ ହେତୁ ଜୀବକୁଳ ସାର ଜନମ (୧) ଧରିବାରେ ।
କ୍ରୋଧ ନକ୍ର(୨) କୁଳ-ପୂର୍ଣ୍ଣ ବିଷୟ ଜଳ ଭବ ସାଗର ତରି ପାରେ ।୧।

ରିପୁ କବଳେ ପଡି ସାଧୁମାର୍ଗ ଛାଡି    ମୂଢ଼ଜଣକୁ  ଚରଣରେ
ଅପୂର୍ବ ମାନବ ଜନ୍ମ ସମ୍ଭବ (୩) ଲଭି ସୁକୃତ ବଳ ଦ୍ୱାରେ ।୨।

---

୧—ମନୁଷ୍ୟ ଜନ୍ମ । ୨—କ୍ରୋଧରୂପ କୁମ୍ଭୀର । ୩— ସଂସାରିକ ବିଷୟରୂପ ଜଳ । ୫—ଭବିଷ୍ୟତ ।

ସଜ୍ଜନ ସଙ୍ଗତ ଲଭିବଲେ ମନ-ମଧ୍ୟୁଁ କଳୁଷ ହରିପାରେ ।
ସ୍ୱର୍ଗ ନିବାସର ହେତୁ (୧) ଜନଙ୍କର ବହୁ ମଙ୍ଗଳ କରିପାରେ ।୩।
କହଇ ଚନ୍ଦ୍ର କବି ବିଶେଷ ଅନୁଭବ ମୋହର ଗିର ଶୁଣିବାରେ ।
ଭକ୍ତ ମାଧବପଦ ମୁକ୍ତି ସୁସମ୍ପଦ ନିଶ୍ଚୟ ନର ଲଭିପାରେ ।୪।

—:O:—

## ୨

ରାଗ—ମୁଖାରୀ
( ଝୁଗଙ୍କ ମାସ ହେଲ ହେ ଶ୍ୟାମ )
ଏହି ବୃତ୍ତରେ

ବିବୁଧ ବୃନ୍ଦ ବନ୍ଦିତ ରାମ ହେ
ନବ ଦୁର୍ବାଦଳ ନିକର ଶ୍ୟାମ । ପଦ ।
ଜିତ କୋଟି କାମ ସୌନ୍ଦର୍ଯ୍ୟ ଧାମ
ଜାନକୀ ନୟନ ଯୁଗାଭିରାମ ।୧।
ଅଞ୍ଜନାନନ୍ଦନ ମୋହ ବର୍ଦ୍ଧନ
ଦୁରନ୍ତ ଦାନବ ଗଣ ମର୍ଦ୍ଦନ ।୨।
ଦେବ ମୁନି ବୃନ୍ଦ ଆନନ୍ଦ ଧାରା
ବୁହାଇଲ ନାଶି ଧରଣୀ ଭାର ।୩।
ଭବଭୟ ହର ତୁମ୍ଭର ନାମ
ଗାୟକ ଜନଙ୍କ ପୂରାଅ କାମ ।୪।
କରଯୋଡ଼େ ଚନ୍ଦ୍ରଶେଖର ଭାଷେ
ରଖ ତାର ମନ ଚରଣ ପାଶେ ।୫।

---

୧- ପରୋପକାର ସ୍ୱର୍ଗଲାଭର ହେତୁ ଅଟେ ।

୮

ରାଗ —ସିନ୍ଧୁ କାମୋଦୀ ।

(ନୂଆ ଭଜ ପାଞ୍ଚାଳୀ ମୁକୁନ୍ଦ ଦେ)

ଏକ ତାଳରେ ।

ମୋ ଜୀବନ ବାନ୍ଧବ ମାଧବ ହେ    କୃପା ନ କଲ କେବେ ।
ଅପାର ଗଭୀର ଭବ ବାରିଧିର    ଭାସିଗଲି ଖର ସ୍ରୋତେ ।
। ପଦ ।

ଅଖିଳ ଜଗତ ବାସୀଙ୍କର ନାଥ    ତୁମ୍ଭେ ତ କରୁଣାନିଧି ।
ମୂଢ଼ ସୁତ ପ୍ରତି ପିତାଙ୍କର ଅତି    ଅଧିକ ଦୟା ଟି ବିଧି ।୧।

ଜ୍ଞାନ ନୈତିକ ଆଦି ବିଧ୍ୟଗୁଣ ନାହିଁ    ଦେଖାଇଲେ ମୋତେ ସନ୍ତ ।
ଅଯାଚ୍ଛ୍ କଥାରେ ମଜାଇ ବୃଥାରେ    ଭାଙ୍ଗିଲେ ମୋ ମୁଖ୍ୟ ବ୍ରତ ।୨।

ତୁମ୍ଭର ଭକତ ଆଡ଼କୁ ମୋ ମତି    ନ ବଳାଇଲ କଦାପିତେ ।
ଦୁର୍ଲଭ ମାନବ ଜୀବନ କି ହେବ    ବିଫଳ ମୋହର ପକ୍ଷେ ।୩।

ମୋହ ଆବରଣେ ଜଡ଼ିତ ପରାଣେ    ନ ଜାଣଇଁ ପୂଜା ତବ ।
ଗୁଣ-ସ୍ତବଗାନ କରିବାକୁ ଜ୍ଞାନ    ମୋ ହୃଦୟେ ନାହିଁ ଲବ ।୪।

ଅନୁତାପାନଳ ଜଳୁଛି କେବଳ    ସତତ ହୃଦେ ମୋହର ।
ଯାହା ଇଚ୍ଛା ତାହା କର ରମାନାଥ    ଭାଷଇ ଚନ୍ଦ୍ର ଶେଖର ।୫।

# ୯

(୨)

## ତାଳ—ଝୁଲ

(ଅତସୀ କୁସୁମ ସମ ଶ୍ୟାମ ହେ ମୁଁ ଗଲିଟି)

### ଏହ୍ ବୃତ୍ତରେ

କରୁଣା ସାଗର ହରି ଅନାଥ ମୁଁ ହେଲିଟି ।ପଦ।
ଥାଉ ଥାଉ ତୁମ୍ଭ ପରି ମହା ପ୍ରଭୁ ପାପହାରୀ
ଅପାର ଭବ ସାଗରେ ଏବେ ଭାସିଗଲିଟି ।୧।

ସଂସାର ମଧ୍ୟେ ମଜ୍ଜି ଅସାର ସମ୍ପଦ ଖୋଜି
ଜୀବର ପରମ ମଣି (୧) ହେଲେ ଗଲି ଭୁଲିଟି ।୨।

ବପୂଜକରଙ୍କୁ ଡାକି ହୃଦୟ ଭିତରେ ରାଖି
ନିଜେ ନିଜେ ପୁରାଇଲି ଘୋର ଦୁଃଖ ଘାଲିଟି ।୩।

ନିଜ ନ ଜାଣିମାପଣେ ମୋହମାୟା ଆବର୍ତ୍ତଣେ
ପଡ଼ିଣ ସ୍ଥିର ସୁଖକୁ ଅନୁଭବ କଲିଟି ।୪।

ଅପୂରୁବ ନରଦେହ ଲଭି ହୃଦରେ ସେନେହ
ଭରେ ତବ ପୁତନାମ ଥରେ ନ ଭଜିଲିଟି । ୫ ।

ମୋର ଅନୁତାପାନଳ ଜଳିବା ଦେଖି କେବଳ
ନ ତାରିଲେ ଚନ୍ଦ୍ର, ମୁହିଁ ପାପଭରେ ମଲିଟି । ୬ ।

---

୨—ପରମେଶ୍ୱର ।

# ୧୦

## ଡାଲ ଫୁଲ

( ବିଶ୍ୱସମ୍ରାଟଙ୍କର ଅଭିଷେକୋତ୍ସବ)

ପ୍ରିୟ ଭାଇମାନେ, ଲୟକର ତାଙ୍କୁ ମନେ ।

ଥୟ ମନେ ଦେଖ ଶୁଭ ଅଭିଷେକ   ଜୟ ବିଶ୍ୱେଶଙ୍କ ଗାନେ ।ପଦା
ଅଖିଳ ଜେଗତର ନିଧି (୧) ଦିବାକର  ନେତ୍ରମୋଦପ୍ରଦ (୨) ଶଶୀ ।
ଜଗତେ ଅତୁଳ ପ୍ରଦୀପ ଯୁଗଳ   ନୀରାଜନ୍ତ (୩) ଦିବାନିଶି । ୧ ।

ସଜଳ ନିବାସ ବିପୁଳ ଆକାଶ   ବିସ୍ତାରଇ (୪) ସୁବିତାନ (୫) ।
ଦାମିନୀ ନିଆଳି ଆଦି ପୁଷ୍ପାବଳି   ଅରପନ୍ତି ବନମାନ (୬) । ୨ ।

ଜଗତ ଜୀବନ ପୂତ ପବମାନ (୭)  ତରୁଶାଖା ସଞ୍ଚାଳନେ ।
ବହି ପରିମଳ ବ୍ୟଜନ(୮)ଅମଳ(୯)  ଧରେ ସେବେ ସସମ୍ମାନେ । ୩ ।

ବନକଣ୍ଠ ଶିଖୀ(୧୦)ଶୁକଆଦି ପକ୍ଷୀ   ନିକର କୂଜନ ଛଳେ ।
ଉତ୍ସବ ସଙ୍ଗୀତେ ଗାନେ ଛନ୍ଦି ରତ  ସନ୍ତତ ଅନନ୍ଦ ଭୋଳେ । ୪ ।

ଦୀନ ଚନ୍ଦ୍ରଗ୍ରହ(୧୧ ସେ ବିଶ୍ୱ ସମ୍ରାଟ  ଚରଣ ତଳେ ମାଗଇ ।
ଭକତି ସମ୍ପଦ ଷାପବିଷେ ଗଦ   ଦିଅନ୍ତୁ ସଦୟ ହୋଇ । ୫ ।

———

୧—ଆଧାର । ୨—ଆନନ୍ଦ । ୩—ନୀରାଜନା କରନ୍ତି । ୪—ବିସ୍ତାର କରେ । ୫—ବିଶାଳ ଚନ୍ଦ୍ରାତପ । ୬—ଅରଣ୍ୟସମୂହ । ୭—ପବନ । ୮ ପଙ୍ଖା । ୯—ନିର୍ମଳ । ୧୦—ମୟୂର । ୧୧—ସୁଭଗାୟୁଂ ।

# ୧୧

ରାଗ—ପୂରବୀ, ତାଳ—ଆଠତାଳୀ ।

( ତୁମ୍ଭ ପଦ, ମୋ ହୃଦୟ ମଣିମୟ ହାରରେ )

ଏହି ବୃତ୍ତରେ

ବଂଶୀଧାରୀ, ମୋ ହୃଦୟ
ଭବଭୟହାରୀ ହେ । ଘୋଷା ।
ତୁମ୍ଭେହିଁ ମୋହର ସକଳ ସମ୍ପଦ
ରିପୁ ଗଣ ଫଣିବଶେ ମହାଗଦ ।
ଚରମ ବିଭବ (୧) ସେ ପରମପଦ (୨)
ସଦୟ ପ୍ରଦାନକାରୀ ହେ ।୧।
ଭବଧି ଦୁଃଖତରଙ୍ଗିର ଷାଳନେ
ଉନ୍ମାଦ ଗୃହବରଗ ସାଧନେ
ସମରଥୀ ଯୋଗ ଖଣ୍ଡିବା ବିଧାନେ
ତବ ପାଦ ତାଡ (୩) ବାରି ହେ ।୨।
ଗମ୍ଭୀର ବିଷୟ ନଚୟ ବିରତ,
ଅନବରତରେ ଯୋଗଧ୍ୟାନେ ରତ
ଜୀବନ ମୁକତ ମୁନିଜନ ବ୍ରାତ
ହୃଦମ୍ବୁ ମଧ୍ୟ ବିହାରୀ ହେ ।୩।
ପୂରୁବ ବାଞ୍ଛିତ ଅତଶୟ-ପୂତ
ଅନାବିଳ (୪) ମହାପ୍ରେମରେ ଯୁତ ।

---

୧—ଶ୍ରେଷ୍ଠ ସମ୍ପଦ । ୨—ମୋକ୍ଷ । ୩—ବିଷ୍ଣୁପାଦସମ୍ଭୂତା ଗଙ୍ଗା । ୪—ବିଶୁଦ୍ଧ ।

ଦିବାନିଶ ପାଦ ଯୁଗର ଭକତ
ଶୋଷିବା ମାନସତୃଷ୍ଣା ହେ । ୪ ।
ତବ ଗୁଣଗାନେ ନାମର ଧିଆନେ
ତବ ପାଦପଦ୍ମ ମଧୁ ଆସ୍ୱାଦନେ ।
ପବିତ୍ର ଚରିତ ସୁଧାରସପାନେ
ଦାସ ଚନ୍ଦ୍ର ଦିନ ଯାଉ ହେ । ୫ ।





ରାଗ—ଦେଶୁପ୍ତ, ତାଳ— ଆଠତାଳୀ ।

ଜଣା ଥିଲ କି ମୋତେ ଏ ସବୁ ହେ,

ବଣା ହେଲି ମୁହିଁ ଜଣା ପଡ଼ି ହୋଇ
ବିଷୟେ ବଳାଇ ପ୍ରୀତି ହେ । ଘୋଷା
ହେଉଗଲିଣି ଏବେ ବିଷମତା ଓପ,
ଲଗିଲେଣି ଘୋର ଦୁରିତ ତାପେ ।
ସୁଖ ଭୋଗ ହେଲା ଦୁଃଖ-ତିକ୍ତ ଜାଲ
ନିଜେ ପତାଇଲି ଗର୍ତ୍ତ ହେ । ୧ ।
କାମ କୋପ ଆଦି ରିପୁନିକର,
ବାମ (୧) ହୋଇଲେଣି ପ୍ରବଳତର ।
ଭରମରେ ଦେଇ ସାରଥ ଛାଡ଼ି
ବହିଲି ତାଙ୍କ ଘାତ ହେ । ୨ ।

---

୧—ପ୍ରତିକୂଳ ।

ପରମ ପୁରୁଷ (୧) ପଦ ନିକଟ,
ମାନସକୁ ନ କରାଇଣ ଭେଟ,
ଦାର-ସୁତ ମେଳେ କାଳନେଲ ହେଲେ
ଦିବସ ଯାମିନୀ ମାତି ହେ । ୩ ।
ସରଗ ଲଭର ମୂଳ ସାଧନ,
ପରଜନ ଉପକାର ବିଧାନ,
ନ କରି କେବଳ ନିଜଲାଭ ମୂଳ
ଭାବ ତହିଁ ଦେଲ ମତି ହେ । ୪ ।
ଅଜଣା ପଣରେ କଲଣ ଯାହା,
ମାର୍ଜନା କର ତା କମଳ ନାହା,
ଦୟା କର ଲବେ ଚନ୍ଦ ମନ ଏବେ
ଲଗ୍ନ ତବ ପଦେ ସ୍ଥିତି ହେ । ୫ ।

——o——

## ୧୩

(ରସାଳସାରେ, ରସି ଏକ ପୁଣି ଲୋକ ଦସାରେ )

ଏହି ବୃତ୍ତରେ

ଚାରୁବଦନ, ତବ ଦେଖାଅ ହେ ନନ୍ଦନନ୍ଦନ । ପଦ ।
କୃପା ଅକୂପାର (୨) ମଧୁସୂଦନ,
ଭକତ ସନ୍ତାପ ଅପନୋଦନ । ୧ ।
ଅଘା-ବକ-କଂସାସୁର ମର୍ଦ୍ଦନ,
ଗୋପ ଗୋପୀ ନେତ୍ରାନନ୍ଦ ବର୍ଦ୍ଧନ । ୨ ।

---

୧—ଭଗବାନ । ୨—ସମୁଦ୍ର ।

ସୁଧା ସୁନ୍ଦର ହୃଦପୁଚନ୍ଦନ,
ଧର୍ମ, ଅର୍ଥ, କାମ, ମୋକ୍ଷ ସଦନ । ୩ ।
ନାଶ ରୂପଜିତ କୋଟିମଦନ,
କୁନ୍ଦ ଜାଲମ୍ବ ଗଣନ୍ତା ରଦନ । ୪ ।
ଗୁରୁ ପାପଭରେ ଲଭେ କଦନ (୧),
ଚନ୍ଦ୍ର କରେ ତବ ପାଦବନ୍ଦନ । ୫ ।

— * —

# ୧୪

## ରାଗ—କାନନ ଗୌଡ଼

(ତୋ ଯେଣୁ ତମାଳଶ୍ୟାମ ମୋ ମରଣ କଷିଲ)
ଏହି ବୃତ୍ତରେ ।

ପତିତପାବନ ହରି
ଗ୍ରାମରେ ଏ ଗୁହାରି
ପତି ବନନ୍ଦେ କରୁଛି
ତବ ପଦେ ଜୁହାରି ହେ ।ପଦ।
ନଗଇନ୍ଦ୍ର ସୁତା (୨) କୂଳେ
ଯୋଗ କରିନାହିଁ କାଳେ
ହୁଦୁଁ କଷ୍ଟ ତାପ ବଳେ
ସିନ୍ଧୁ କୁ ତ ବାହାରି ହେ ।୧।
ତୁମ୍ଭ ପବିତ୍ର ନାମକୁ
ଦମ୍ଭରେ ନ ଜପିବାକୁ
ଜଗଛନ୍ତି ମୋ ହୃଦକୁ
ରିପୁଗଣ ପାହାରି (୩) ହେ ।୨।
ପାଦ ତବକୁ ଛଡ଼ୁରି
ଯାପଲେ ଦିବା ଶର୍ବରୀ
ଥକଲିଣି ପନ୍ଥ କରି
ଗଲିଣିଟି ମୁଁ ହାରି ହେ ।୩।
ମନଟି ଅତି ଚଞ୍ଚଳ
ଜନମାଏ ଗୋଳମାଳ
ସବୁ ବିପଦର ମୂଳ
ଦୋଷ ଦିନା ତାହାର ହେ ।୪।
ଦୀନ ଚନ୍ଦ୍ରଶେଖରର
ବନିତ ଯେଣୁ ହୃଦର
ନ ତାରିଲେ ରମାବର
ଶକତ କି କାହାର ହେ ।୫।

— X —

୧—କ୍ଲେଶ । ୨—ଗଙ୍ଗା । ୩—ପ୍ରହରୀ

# ୧୫

ରାଗ—ଭାମୋଦୀ, ତାଳ ଆଦି

( ବନ୍ଧୁ କଳି କା ଦୁର୍ବିଗ୍ରହକୁ ହେ )

ଏହି ବୃତ୍ତରେ ।

ହର କଳି କା ଦୁର୍ବିଗ୍ରହକୁ ହେ,
ଜାଣ ଅସତ ବ୍ୟବହାରକୁ ହେ,
ଜୀବ ପରଶମଣି ଫିଙ୍ଗିଲ ଜାଣି ଜାଣି
ଲଭି ବିଷୟ କାଚ ଗୁଡ଼ରକୁ ହେ । ପଦ ।

ଅମରାବତୀ ପୁରୀ-ବିଳାସ-ଅପସରୀ
ଆଦୃତ ତେଜ ମୋଢ ହାରକୁ ହେ,
ଟପିନ ଗୃହଯୋଷା ଶରଣୀ କଣ୍ଠଭୂଷା
ରଚିଲା ଭୁକ୍ତ ଗୁଞ୍ଜା ହାରକୁ (୧) ହେ । ୧ ।

ଗୋବିନ୍ଦ ପାଦେରତ ହେଉଥିବା ଭକତ
ବୃନ୍ଦେ ନକର ନମସ୍କାରକୁ ହେ,
ଅସାର ଧନ ମଦେ ମାତୁଥିବା ପ୍ରମୋଦେ
କନର କଲ ଉପଗ୍ରହକୁ (୨) ହେ । ୨ ।

ଅତ୍ୟନ୍ତ ସୁକୁମାର ମହାରାଜ କୁମାର
ଦାଲ ଭଖାଇ ଖାଲି ଖାରକୁ ହେ,
ସନ୍ତତ ସଙ୍ଗ ସେଜ ନମିଳୁଥିବା ବେଳ (୩),
ତନକେ ଦେଲ ଦୁଗ୍ଧ ସାରକୁ ହେ । ୩ ।

---

୧—ସମ୍ମୁଖ । ୨—ସେବା । ୩—ଭଣ୍ଡାରୀ, ତନ୍ତ୍ରୀ ।

କେବେହେ ସାଧୁସେବନ ନ କଲି ପୂଜକୁଳେ
ନ ଆଲିଙ୍ଗିବା ଗଙ୍ଗାଧାରକୁ ହେ,
ଗେଲେ ବଗୁର କଲ ହେଲେ ଛଇବ ବୋଲି
ଦୁସ୍ତର ଭବ ଅକୂପାରକୁ (୧) ହେ । ୪ ।
ଅନୁତାପ ଅନଳେ ଜଳି ଏବେ ହୃଦଳେ
ଡରୁଛୁ ଦୋଷ ଅଙ୍ଗୀକାରକୁ ହେ,
ଚାହ ଜବନ୍ତୁଁ ତାର ସଦୟେ ରମାବର
ଚନ୍ଦ୍ରଶେଖର ପରଗୃରକୁ (୨) ହେ । ୫ ।

---

## ୧୭

ରାଗ—ଭୈରବୀ, ତାଳ ଆଠତାଳୀ

ଶ୍ୟାମ ସମ କମନୀୟ ନାହିଁ ଆଉ
ତା ପଦ ଧିଆନେ ମୋ ଜୀବ ଯାଉ । ଘୋଷା ।
ଶିଖଣ୍ଡର ଚନ୍ଦ୍ରିକା ରୁଚି କି ସୁନ୍ଦର ଝଲମଲ
ଇନ୍ଦ୍ରଧନୁ ତହିଁ ଦେଖି ଦାଉ ଦାଉ । ୧ ।
ଅତସୀ କୁସୁମ ରମା (୩) ଧର ସେ ମୁଖ ଚନ୍ଦ୍ରମା
ଦେଖି ମୋ ଦୁରନ୍ତ-ଅମା(୪)-ଗାଢ ଯାଉ । ୨ ।
ସେ ଅତୁଳ ରୂପଠାଣି ସୁଗୃରୁ ବାଙ୍କ ଗୃହାଣି
ଠାରେ ମୋ ନୟନ ବେନି ଲାଗି ଥାଉ । ୩ ।
ରାଧିକା ମନମୋହନ ଅପୂରୁବ ବଂଶୀସ୍ୱନ
ଶ୍ରବଣେ ମୋର ଶ୍ରବଣ ମୁକ୍ତି ପାଉ । ୪ ।
ଘନନୀଳ ଅପଘନ (୫) ପତିତ ପାବନ, ଦୀନ
ଚନ୍ଦ୍ରର ନାଶ କରନ୍ତୁ ଆପଦାଉ । ୫ ।

—*—

---

୧—ସମୁଦ୍ର । ୨—ସେବକ । ୩—ଶୋଭା । ୪—ଅମାବାସ୍ୟା ।
୫—ଶରୀର ।

## ୧୨

ରାଗ—ତୋଡ଼ିପରଜ

( ରେ ସଙ୍ଗାତ, ସେ ସଂଜା ବସିବ ଲୁଷି )

ଏହି ବୃତ୍ତରେ ।

ହେ ମାଧବ, କି ଦଶା ଲଭିବି ଆଉ

ଏବେ ପାପାନଳ ହୋଇଣ ପ୍ରବଳ
ଜଳିଲାଣି ଦାଉ ଦାଉ । ପଦ ।
ମୋହ-ଆବରଣେ ପଡ଼ି ଏବେଣ ତେଣେ
ଅବାଟେ ଯାଉ ଯାଉ
ମୋ ପାଦ ଖଳନ(୧) ଦେଖି ବନ୍ଧୁ ଜନ
କଲେଣି ତ କାଉ ଛାଉ ହେ । ୧ ।
ବୃଥା ମୋଦଭର ଲଭିବାକୁ ଯାର
ସୁଖ ଭୋଗ ହେଉ ହେଉ,
ଦୁଃଖାନଳ ତାତ ହେତୁରୁ ମୋ ଗାତ୍ର
ପୋଡ଼ିଲାଣି ହାଉ ହାଉ ରେ । ୨ ।
ଫୁଲାଇଣ ବୃକ୍ଷ ବିଷୟ ରସକୁ
ଆନନ୍ଦରେ ଖାଉ ଖାଉ ।
ରିପୁଗଣ ଫଣୀ ମୋ ବିବେକ ମଣି
ଗିଳିଲେଣି ଚାଉ ଚାଉ, ହେ । ୩ ।
ଗରବରେ ମାତି ନିଜର ସୁଖ୍ୟାତି
ମୁଁ ତ ପଡ଼ଣେ ଗାଉ ଗାଉ ।
ଯମଦୂତେ ଆସି କେଶ ଆକର୍ଷି

---

୧—ସ୍ଖଳନ ।

ହେଉଛନ୍ତି ସବୁ ଗର୍ବ ହେ । ୪ ।
ପତିତ ପାବନ ଦୁରିତନାଶନ !
ନାଥ ! ତୁମ୍ଭେ ଥାଉ ଥାଉ ।
କେଉଁ ସୁଗନ୍ଧ ନୋହିଲେ ଅର୍ପିତ
ତବ ଗୃହେ ଯୋଗେ ଯାଉ ହେ । ୫ ।

—*○*—

# ୧୮

ରାଗ — ସାବେରୀ, ତାଳ — ଆଡ଼,

କ୍ଷମା କର ହେ, ଦୀନବନ୍ଧୁ ମୋର ଉମାଭବ ହେ ।

ବହୁ ଦୟା ଦାରେ ଏହୁ ଦାହଠାରେ । ଘୋଷା ।
ଦଣ୍ଡ ବଢ଼ିବାକୁ ଚଳଥିବା
ମଣ୍ଡଳ, ପ୍ରଭୁର କ୍ଷମା ଦେବା
ଦାଣ୍ଡକୁ ଟି ଏହା ନଜାଣିବା ଦୋଷ
ନ ଯାଉ ସରବ କରିବାଙ୍କର ହେ । ୧ ।

ଜାଣପଣେ ଦୋଷ କରିଥିଲେ,
ହାଣ ଖାଇବା ଉଚିତ ଭଲେ,
ଜ୍ଞାନ ନ ଥିବାରୁ ମୋର କିଲେ,
ସାର ଶ୍ରବଣ ଭଜନ ବଷୟୁ ଛାର ହେ ୨ ।

କାମ କୋପ ଲୋଭ ମୋହ ଆଦ,
ଏମ ହରଣ ହୋଇଲେ ବାଦୀ,
ଯମଦଣ୍ଡ ମୋ ପାଇଁ ସମାଧି
ତାମସରେ ବେକ ମୋଡ଼ିଲେ ବବେକର ହେ । ୩ ।

ପାପ ଜଳଦ (୧) ହୋଇ ପ୍ରବଳ
ସ୍ୱାର୍ଥ ପବନ ଦେଖାଇ ବଳ
ଢୋମଭରେ ମୋ ହୃଦୟ ସ୍ଥଳ,
ଧ୍ୱଂସି ହୁଙ୍କିଲେ ମୋ ଅପବର୍ଗ (୨) ନଶ୍ୱର ହେ । ୪ ।
ଝୁଣ୍ଟି ପଡ଼ିବାରୁ ମୁଁ ଶିଖିଲି,
ବଣ୍ଟୁଧରରୁ ରକ୍ଷା ପାଇଲି,
ମେଣ୍ଟିଯିବ ଏବେ ମାୟା ଜାଲି
ଅଙ୍ଗେ ଧରିବ ମୁଁ ଚନ୍ଦ୍ର, ପାଦ ଭୂମିର ହେ ।

— — — —

## ୧୯

ରାଗ—କାମୋଦୀ, ଆଦ୍ୟ ତାଳ

କହିବାକୁ ଲଜ୍ଜା, ନାଥ ଯାହା ହେଲ ଆଜ ଘୋଷା।
ଜନମୀ ସର ଯେତି ଚତୁ ତରୁଣୀ ଭେଟି
ପାପ ଆଣିବେ ମୁହିଁ ଦେଲି ଗୁହିଁ ।
ସରଗ ନାଗର ପାଠ ଭଜାଠ ପର-
ଉପକାର (୩) କରିଣେ କଲି ନାହିଁ ।୧।
ସରବ ଦେବମୟ ଅତିଥି କରି ଭୟ
ନଳାଇ ଗଲେ ମୋର ଘର ଦ୍ୱାରୁ ।
କପଟ ଜନପ୍ରାଣ ବଞ୍ଚାଇବାକୁ ଜାଣ
ସତ ଭଣିବା ପାଇଁ ହେଲି ଭୀରୁ । ୨ ।
ଭବ ସାଗର ଜଳ ପାର ହେବାର ମୂଳ
ସୁଜନ ସଙ୍ଗମେଳ କଲି ଘୃଣା ।

---

୧ — ସମୂହ । । ୨ — ମୋକ୍ଷ । ୩ — ପରୋପକାର ସ୍ୱର୍ଗମାର୍ଗର ଦ୍ୱାର ସ୍ୱରୂପ ।

ବିଷୟ ରସ ଗୃଣି ଅସାର ସୁଖେ ଲଖି
ପରମ ପଦ ପଥ ହେଲି ବଣା ।୩।
ବିଧାତା ହର ଶିବ ସଦ୍ଗୁରୁ ଗୁରୁଦେବ
ସୁଧାମୟ ବଚନ ଢେର ବୁଝ ।
ଖଳ କପଟୀ ଜନ ଉପଦେଶରେ ମନ
ଆଦରେ ବଳାଇଲି ବୁଦ୍ଧି ସାର ।୪।
ଅସତ କଇତବ (୧) ନ ଥିବା ଲକ୍ଷ୍ମୀଧବ-
ଜୀବକଙ୍କୁ କହିଲି କନ୍ଦୁକଥା ।
ପତିତ ଉଦ୍ଧାରଣ ପାପ ଅପହରଣ !
ଚରଣ ଦୂର କର, ଶିବ ବ୍ୟଥା ।୫।

—:୦:—

# ୨୦

ରାଗ—ତୋଡ଼ିପରଜ

ରେ ମାନସ, ଭକ୍ତି ମଣିଲୁ ବିଷ ।

ଅସାର ସଂସାରେ ମାତି ସର୍ବଦରେ
ଗୃହିଣି ବିଷୟ ରସ ରେ ।ପଦ।
କି ହେଲା ଅବଶ ଅତି ଦୁଃଖରେ !
ଲଭିବୁ ବିଶେଷ ତୋଷ ।
କପଟ ବା ମୋର ଏ ଜୀବନ ସାର
ହୋଇବ ଅନ୍ଧ ସରସ ରେ ।୧।
କାହିଁ ପାଇଁ ତୋର ବିବେକ ବିଗୁର
ଏବେ ହୋଇଲା ମୋଷ (୨) ।

୧—କପଟ । ୨—ଲୁପ୍ତ ।

ଏ ଜନମ ପରେ ନାଶେଁ ନରକରେ
ମୋର କରଇବୁ ବାସ ରେ ।୨।
କାହାର ବଳରେ ବାହାପିଆ, ବାରେ
ସଂସାରର ମାୟା ପାଶ ।
ଫିଟାଇଣ ହେଲେ କଟାଇବୁ କାଳେ (୧)
ବୋଲି ବାନ୍ଧିଲୁ ସାହସ ରେ ।୩।
ଲୋଭ ମୋହ ଆଦ୍ୟ କ୍ଷୋଭ ଜଡପାଦୀ
ରିପୁ ଗଣ ବନ୍ଧୁ ବେଶ ।
ବସିଲେଣି ଗଳେ ଜଗିବାକୁ ବଳେ
ମୋହର ସରବନାଶରେ ।୪।
ହେଲଣି ତ ଯାହା ଅଧର୍ମର ସାହା
ହର ପାଦେ ଏବେ ବସ ।
ଚନ୍ଦ୍ର ପାପଚୟ ଭଞ୍ଜକ ବିଲମ୍ବ
ଭୁ ହେ ଲେ ତାହାଙ୍କ ଦାସ ରେ ।୫।

---

## ୨୧

( ରାମ ବରଟେରେ, ବେଷ ବନ୍ଧୁଲୁକ )
ଏହ ବୃତ୍ତରେ ।

ଦାସଠାରେ ହେ; ନାଥ ବେଷକର କେଉଁ ବଗୁରେ
ନାହିଁ ମୋର ଦୋଷ ମୁହିଁ ତବ ବଶ
ମାନସେ ଏହା ଭାବ ଥରେ ।ପଦ।
ତୁମ୍ଭ ପଦଧ୍ୟାନ ତୁମ୍ଭ ଗୁଣଗାନ
ନ କରିବାର୍ ଏକବଚର ।।

---

୧ — ସମୟକୁ ।

ତୁମ୍ଭେ ତ କଦାପି ଦୋଷକୁ ଆରୋପି
ନପାର ମୋହର ଉପରେ ।୧।

ଯଥା ନିୟୁକ୍ତ କରିଅଛ ଜାତ
ପ୍ରାଣିଗଣେ ଏହୁ ସଂସାରେ ।
ତଥା କାର୍ଯ୍ୟରତ ହୁଅନ୍ତୁ ସନ୍ତତ
ସେମାନେ ତ ମହାନନ୍ଦ ରେ ।୨।

ମୋ ବିବେକ ବୁଦ୍ଧି ଲଭନ୍ତୁ ତ ସିଦ୍ଧି
ସତତ ତବ ହୁକୁମରେ ।
ତୁମ୍ଭ ଦତ୍ତ ଶତ୍ତ୍ୱ ମୋହର ଆପ୍ତତ୍ୱ
ହୋଇବଟି କେଉଁ ପ୍ରକାରେ ।୩।

ମଦୀୟ ସ୍ମରଣ ଶକ୍ତି ତଥା ଜ୍ଞାନ
ସଦା ତୁମ୍ଭର ଆଦେଶରେ
କରମ କରନ୍ତୁ ଧରମ ପାଳନ୍ତୁ
ଜୀବନରେ ଯଥା ବିଧିରେ ।୪।

ଅଧମ ସୁତକୁ ଭଲେ ଗୃହିବାକୁ
ଯଦି ବିଗୃହୁଛ ମନରେ
ସତ ଉପଦେଶ ଦିଅ ହେ ରମେଶ
ଚନ୍ଦ୍ରର ଯାଚନା ଗିରରେ ।୫।



# ୨୨

(ତାଳେ ତ ତାଳଲୁ ନାହିଁ କୃପା ସୁଧା ଝରକାରେ)

ଏହୁ ବୃତ୍ତରେ ।

ଭଲେତ ସଂଶୁଲ ନାହିଁ କୃପା ସୁଧାରସକୁ ହେ ।ଘୋଷା

ଦୀନବନ୍ଧୁ ତୁମ୍ଭ ନାମ    ତୁମ୍ଭେଟି କରୁଣାଧାମ
ବୋଲି ଦିଆଉଛ ପରା
ଜଗତରେ ଘୋଷକ୍ରି ହେ । ୧ ।

ଶୁଣିଅଛୁ ଗଜ କଥା    ପ୍ରହ୍ଲାଦ ହୃଦେ ବ୍ୟଥା
ଏଡିବାକୁ ଦଉଡିଲ
ଆସୁ ତାଙ୍କ ପାଶକୁ ହେ । ୨ ।

ଜଲି ନାହିଁ ତବ ଧ୍ୟାନ    ନ ଜଲି ଯା ନାମଗାନ
ବୋଲି ହେ କ୍ଷମାନିଧାନ
ନ ଧର ଏ ଦୋଷକୁ ହେ । ୩ ।

ତୁମ୍ଭର ଆଦେଶ ବଳେ    ମର୍କି ଣ ବଷସୂ ଜଳେ
ଭୁଲିଲି ତୁମ୍ଭକୁ ସିନା
କ୍ଷମାକର ଦାସକୁ ହେ ।୪।

ଆଉ ନ କରିବ ହେଳା    ତରିବାକୁ ଭବ ବେଳା
ଚନ୍ଦ୍ରେ କପ ସାଧୁ ଜ୍ଞାନ
ଭେକ ମନୁ ବେଷକୁ ହେ । ୫ ।

---

# ୨୩

## ରାଗ—ଆନନ୍ଦଭୈରବୀ

ରଙ୍କନିଧି ମୋର ପଙ୍କଜାନନ

ଅଙ୍କକୁ ନିଅ ମନ ହେ ।

ସଙ୍କଟୁ ଉଦ୍ଧର କଙ୍କରକୁ ଘୋର

ଶଙ୍କର ଆଦି ଦେବଙ୍କ ସେବମାନ । ପଦ ।

ତ୍ରାହିଅଛ କେତେ ହର ! ମଦ (୧) ଜଠେ

ବାହିକାଷ ପଣ୍ଡିତଙ୍କୁ ହେ ।

ପାରିକର ଭବ ବାରିଧିରୁ ମୋତେ

ହାରିଲଣି ଦେହ ଗୃହୀ ଦୁଃଖଙ୍କୁ ।

ପଡ । ଗୃହ ଦୁଇ ଯେ ରିପୁ ସାରିଲେଣି

ମୋ ବପୁ, ମାର ପ୍ରବଳ ରୋଷେ,

ଶାସ୍ତ୍ରଙ୍କ ସନ୍ତାପୁଁ, ସରିଗଲଣି

ମୁହିଁ ଘର ତାଙ୍କ ପ୍ରତାପୁଁ,

ତରିବାକୁ ଦାଇତ-ଅରି ରଖ ସେ ଗୃପୁଁ । ୧ ।

ସ୍ୱର୍ଗର ଦେବତା ବର୍ଗଙ୍କର ତ୍ରାତା

ଭର୍ଗଙ୍କ ମନୋବାଞ୍ଛା ହେ ।

ଭାର୍ଗବଙ୍କ (୨) ସାଧୁ ମାର୍ଗର ପ୍ରଦାତା !

ମାର୍ଗଣ (୩) ସମ ସେ ବପୁ ଦେଲେ ସାରି

ପଡ । ଆସ ଅସ ହେ ହରି

ଦାସଦୋଷ ନଧର ତ୍ରାସ ନିକର ଏବେ

---

୧—ମଦକାର୍ଯ୍ୟ । ୨—ପରଶୁରାମ । ୩—ଶର ।

ନାଶ ବୈକୁଣ୍ଠ ତୃଷ୍ଣା, ଭାଷ ମଧୁର ବାଣୀ
ହାସ ପ୍ରକାଶ କର ପାଶରେ
ରଖିଦିଅ ଅସମ ପଦ(୪)ଶିରୀ । ୨ ।

ଭାବଥିଲି ହୃଦେ ସେବଣ ପ୍ରମୋଦେ
ପବନ ତବ ପାଦରେ ହେ ।
ଭାବୀ ଜୀବନକୁ ନେବ ସୁପଥକୁ
ଦାବି (୫) ପାପବୃତ୍ତି ହେବ ସୁଖୀ ବାରେ ।
ପଣ୍ଡ । ଏବେ କାହିଁ ସେ ମାନ
ଈବେ ହୋଇଲ ଆନ ବିବେକ ବୁଡ଼ାଇଲ
ଲବେ ନକର ଜ୍ଞାନ ଯେବେ ହେ ନ ଘେନିବ
ନିବେଦନକୁ ଧ୍ୟାନ ଦେବେ
କରିବ ଭବେ ତବ ନିନ୍ଦା ରଟନ । ୩ ।

ଶ୍ୟାମବନ୍ଧୁ ପଦ ତାମରସେ (୬) ହୃଦ
ପାମର ଚନ୍ଦ୍ରର ଥାଉ ହେ ।
କାମ ଆଦି ରିପୁ କାମକର (୭) ପୁଣି
ବାମ ହେବେ ନାହିଁ ତାମସରେ (୮) ଆଉ ।
ଚଉ । ସ୍ୱତ ଦିବସ ଏହି ଗୃହ ଭିତରେ
ନନ୍ଦ ପ୍ରୀତି; ତୁମ୍ଭର ନାମ
ଗୀତ କରିବ ରହି ସାତଶୟ
ଦୁଃଖର ଘାତରେ ନୋହି ଦହି
ମତିବ ଆନନ୍ଦରେ ଖ୍ୟାତି ଅର୍ଜିବ ମୁହିଁ । ୪ ।



---

୪—ମୋକ୍ଷ । ୫—ଦମନ କରି । ୬—ପଦ୍ମ । ୭—ଇଚ୍ଛାକରି । ୮—କ୍ରୋଧରେ ।

# ୨୪

ଘୃଣ୍ଟି ଘୃଣ୍ଟି ଚ, ନାଥ କାଳଯାଁକ ଗଲ ବୋହୁଡ ।

କଣାମାବ ଉଣା ଦାନରେ କରୁଣା-
ସାଗର ନୁଅନ୍ତା ନାହିଁ ଚ ।ମଦା
ଦୁରନ୍ତ ଅନଳ ଶିଖାରେ ପ୍ରବଳ
ରୂପେ ହୋଇଥିବା ଦାହୁତ,
ଦୀନଜନ ଗଣେ ଚାହିନ୍ତ ଆମଣେ
କୃପାବାରିଧାର୍ ବାହୁତ (୧) । ୧ ।

ମୋଠାରେ ଯେପରି ନାଦର୍ଶ୍ୱା ସେପରି
ଦେଖିନାହିଁ ମୁହିଁ କାହିଁ ଚ,
କରୁଣା ବଭବ (୨) ଭଣ୍ଡାରରୁ ତବ
ନେଇ ନାହିଁ ଜାଡ଼ି କେହୁତ । ୨ ।

ଯାହା ରୂପ ଦେଖି ଗୋପେ ଗୋପୀଆଣି
ହୋଇଥିଲ ଅତ ମୋହୁତ,
ଆରତ କରୀର, ପାଣ୍ଡବ ନାରୀର
ଦୁଃଖହାରୀ ତୁମ୍ଭେ ସେହୁ ତ । ୩ ।

ଦୀନ ଚନ୍ଦ୍ର ଓତେ ବନସ୍ତୀ କରେଷେ
ମୋ ଦୋଷେ ବମୁଖ ନୋହୁତ,
ଲଭି ପ୍ରଭୁପଦ ଦାସର ବଗନ
ନାଶିବା ନୁହେଁକ ବହୁତ (୩) । ୪ ।



୧—ବୃହାଇ । ୨—ସମ୍ପଦ । ୩—ଉଚିତ ।

## ୨୫

(ମୋହନସ୍ମିତ ଜଣା ପଡ଼ିଲା ମୋ) ଏହି ବୃତ୍ତରେ ।

ଗୋବରଧନ ଧର (୧) ଧାରଣ ହେ

ପଥର ମୂରତି ଧରିଣ ଧରଣୀ
ପରେ ପତିତ ବନ୍ଧୁ (୨) ତାରଣ ହେ । ୧ ।
ହେଲେ ସୁର ନର କରୁଥିବା କ୍ରୂର
ଘୋର ଅସୁର ବୀର (୩) ମାରଣ ହେ । ୨ ।
ଦେବ ନାଗ-ନର-ପଶୁ ଆଦି ଧର
ଚର ଅଚର ବିଶ୍ୱ କାରଣ ହେ । ୩ ।
ତବ ଚିନ୍ତାରତ ସକଳ ଭକତ
ବିପଦ ତତି ଅପହାରଣ ହେ । ୪ ।
ଦୟା ବହି ଲଭେ ଚନ୍ଦ୍ର, ରତ୍ନାଦେବେ (୪)
ନୃପ ତା ପାପ ଅପସାରଣ ହେ । ୫ ।

---

## ୨୬

( ଖେଳା ଖଞ୍ଜରୀଟ ପୁଣ ) ଏହି ବୃତ୍ତରେ ।

ଜଗତ କରତା ହରି

ଅଧମ ତାରଣ ଦୁରିତ ନାଶନ ଦୀନବନ୍ଧୁ ଦଇତାରି
ଜଗନ୍ନାଥ, ଜଗତ କରତା ହରି । ଘୋଷା ।
ଅଦ୍ଭୁତ କୃତି ଦେଖାଇଲ କ୍ଷିତି-
ମଧ୍ୟରେ ସରବ ଜନେ
କାହିଁକି ମୋ ପାଇଁ ସିନ୍ଧୁସୁତା ସାଇଁ
ଦୟା ନ ବହୁଛ ମନେ । ୦ ।

---

୧-ପର୍ବତ । ୨-ଅହଲ୍ୟା । ୩-ସମୁଦ୍ର । । ୪ ବ୍ରାହ୍ମଣ ।

ବିପଦ ଗଞ୍ଜନ ଦାରିଦ୍ର୍ୟ ଭଞ୍ଜନ
ସୁଦାମାର, ରମାବର
ଅହଲ୍ୟା ପାଷାଣ ମୂରତି ତାରଣ
ତୁମ୍ଭେ ସ୍ୱୟମ୍ଭୁ ହରି । ୨ ।
ନକ୍ରର ଗରାସୁଁ ଚକ୍ର ପେଶି ଆସି
ରଖିଲ ଗଜଙ୍କୁ ବଳେ ।
ବିପଦ ପଡ଼ନ୍ତା ଦ୍ରୁପଦ ଦୁହିତା
ଲଜ୍ଜା ନିବାରିଲ ହେଳେ । ୩ ।
ପତିତ ପାବନ ବାନା ବହୁଅଛ
ବନ୍ଧୁ ପତିତଙ୍କୁ ତାରି ।
ଚନ୍ଦ୍ର ପରି ମହା- ପତିତେ ତାରିଲେ
ହେବ କିନା ବାହାଦୁରି । ୪ ।

---

## ୨୭

### ରାଗ—ପୂରବୀ

(ଚମ୍ପୂର 'ଘ' ଗୀତର ବୃତ୍ତରେ)

ବଡ ବୋଲାଉଛ ଜଗତେ ହୋଇଛ ସରବ କରତା ହରି,
ତୁମ୍ଭ ବଡ଼ପଣ ଦେଖାଉଛନ୍ତି ଶୁଣ ଲଭେ ଅନୁଗ୍ରହ କରି ।
ହେ ମାଧବ, ଏ କି ବେଶି ବାହାଦୁରି ।
ଗୋଟାକେତେ କ୍ଷୁଦ୍ର ପାପୀଙ୍କର ଭଦ୍ର ସାଧି ଦେଖାଅ ଗୁରୁତ୍ୱ ।୧।
ଯାବତ ବୃହତ ପାପ ଏ ଜଗତ ମଧ୍ୟରେ ଅଛନ୍ତି ରହି
ମୋହର ଗରିଷ୍ଠ ପାପକୁ ବରିଷ୍ଠ (୧) ମନେମ ନୁହନ୍ତି କେହି ।

---

୧—ଅଧିକ ବଳ ଶାଳୀ ।

ହେ ମାଧବ, ସ୍ୱଜନ୍ତୁ କରେ ସେ ମୁଖେ ।
କେଉଁ ପାପହାରୀ ତୁମ୍ଭେ ହେ ମୁରାରି କହିଲ ନିଜ ଶ୍ରୀମୁଖେ ।୨।

କ୍ରୂର କାର୍ଯ୍ୟ ମିଛା ଚୋରୀ ଦୋଷ ଯେତେ ହୁଏ ନରମାନଙ୍କର ।
ଆପଣ ଯେ ନିଜେ ଚୋରି କଲ ବ୍ରଜେ ବସ୍ତ୍ର ଗୋପୀଜନଙ୍କର ।
ହେ ମାଧବ, ତାହାକି ତୁମ୍ଭର ଗୁଣ ।
କେଉଁ ବିବେକରେ ଧରିଛ ହୃଦରେ ନ୍ୟାୟ ପନ୍ଥାର ଠାଣ ।୩।

ଲାଞ୍ଚ ଖୁସାମତ ସଂସାରେ ନିନ୍ଦିତ ହୁଏ ଲୋକ ସମାଜରେ ।
ହେ ମାଧବ, ସେ ନୁହେଁକି ତୁମ୍ଭ ଦୋଷ
ପ୍ରକୃତ ବିଷୟ କହିବାକୁ ଭୟ ନକର ନ ବିହ ରୋଷ । ୪ ।

ମୋପରି ଖଳକୁ ବଶ କରିବାକୁ ଯତ୍ନ କରୁଅଛ ଚିତ୍ତେ,
ତବ ପାଦତଳେ ସେବାକୁ କେବଳ ଦିଅ ସବୁବେଳେ ମୋତେ ।
ହେ ମାଧବ, ଅଧମ ଚନ୍ଦ୍ର ଶେଖର ।
କିଛି ନ କହିବ ମତେ ରହିବ ସେବକ ହୋଇ ତୁମ୍ଭର ।୫।

— — — —

## ୨୮

ରାଗ—ଭାଟିଆରୀ ( ଚମ୍ପୂର 'ଦ' ଗୀତପରି )

ହେ ଦୀନବନ୍ଧୁ, ଦାନକର ତବ ପଦାମୃତ ବିନ୍ଦୁ ।
ଦୋଷ ମୋର କ୍ଷମାକର ଦୟାସିନ୍ଧୁ । ପଦ ।

ବୃଦ୍ଧଭାବେ ନାମ ନ ଭଜିଲି
ମୂଢ଼ପଣେ ବିଷୟେ ମଜ୍ଜିଲି ।
ଜଡ଼ପରି ହୋଇ ବିବେକ ହରାଇ
ସାର ବୋଲି ଅସାରେ ହେଜିଲି ।୧।

ଧର୍ମ, ଅର୍ଥ, କାମ, ମୋକ୍ଷ ଗୃହ-
ବର୍ଗର ସତତ ଦାନକାରୀ ।
ତୁମ୍ଭ ପାଦ ଦୁଇ ନ ସେବିଲି ମୁହିଁ
ଭୟଙ୍କର ଭବ ଦୁଃଖ ହାରୀ । ୨ ।

କାମ, କ୍ରୋଧ, ଲୋଭ, ମୋହ ଆଦି
ରିପୁଗଣ ଏବେ ହେଲେ ବାଦୀ
ନିଭଣ ସୁଯୋଗ ହୃଦୟକୁ ଭେଗ
କରୁଛନ୍ତି ମୋର ଦମ୍ଭ ଛେଦ । ୩ ।

ଦଣ୍ଡିବା ଶକତ ଯାର ଥାଇ
ସେହୁ ପୁଣି କ୍ଷମା ଆଚରଇ ।
କରିବାକୁ ଦୋଷ ଭୋଗିଲି ବିଶେଷ
କ୍ଲେଶ ଚନ୍ଦ୍ର ମୁହିଁ ଦଣ୍ଡପାଇ । ୪ ।

———

# ୨୯

## ରାଗ—ଧନାଶ୍ରୀ

ଇଚ୍ଛାକରୁ ନଥିଲି ଯହିଁରେ,
ମନ ପକାଇଲୁ ତୁ ମୋତେ ତହିଁରେ ।ପଦ।
ସଂସାରୀ ଜନଗଣେ ବଂଶ ରକ୍ଷା କାରଣେ
ରମଣୀ ପାଣି ଧରନ୍ତି ମହୀରେ । ୧ ।
ସୁତ ସୁତା ପ୍ରସବ ବିଷୟ ଅନୁଭବ
ସ୍ୱର୍ଗତ ହୁଏ ଯଦି ନାରୀ ସେହୁରେ । ୨ ।
ତେବେ ଆବର ଦାର ପରିଗ୍ରହ ବିଚାର
କରିବା ସଜ୍ଜନର ବିଧି ନୋହଇରେ । ୩ ।

ଲୋକ ତା ନ ମାନିଲେ          କଙ୍କାଳ ବଢ଼େ ବଳେ
ହୁଏ ଶେଷେ ବିଶେଷ ଘରବାହ୍ମା ରେ ।୪।
ଏବେ ଚରମ କାଳେ          ବିଭୁପାଦ କମଳେ
କହେ ଚନ୍ଦ୍ର ଭ୍ରମର ହୁଅ ତୁହ୍ଵରେ ।୫।

——୦——

## ୩୦

ଚମ୍ପୁର 'ଭ' ଗୀତତୁଲ୍ୟ

ପ୍ରାଣବନ୍ଧୁ ,ମୋର ନାହିଁ ଗତି ତୁମ୍ଭ ବିନା, ଦୟାସିନ୍ଧୁ ।ପଦା
ସନାତନ ସବିତା          ସକଳ ପ୍ରସବିତା, ତୁମ୍ଭେ ତ,
ତବ ପ୍ରେମାଲୋକ          ଦେଇ ଅବିରତ,
ମୋର ପ୍ରାଣବୀଜ ଅଙ୍କୁରିତ,     କରାଅ ପଲ୍ଲବିତ, ପୁଷ୍ପିତ ଫଳିତ,
ଜଗନ୍ନାଥ ହେ,
ମୋ ମାନସ ମିଳିନ୍ଦ          ତବ ପଦାରବିନ୍ଦ
କ୍ଷରିତ ମକରନ୍ଦ          ପାନେ ଲଭୁ ଆନନ୍ଦ,
ମୋ ଦେହ ରିପୁବୃନ୍ଦ, ଜୀବନେ, ନକରୁ ଗୋଳମାଳ
ସୁଖେ ଯାଉ ମୋ କାଳ ।୧।
ତୁମ୍ଭେ ମହୋଦାର          ଅଗାଧ ପାରାବାର, ଜଗତେ
ବୁଦୁବୁଦ ମୁଁ କ୍ଷୁଦ୍ର ଅନେ ମରତେ,
କ୍ଷଣକାଳ ହୋଇ ଉତପନ୍ନ     କ୍ଷଣମାତ୍ରକେ ପୁଣି ହେଉଛି ବିଲୀନ
ଜଗନ୍ନାଥ ହେ,
ଭିକ୍ଷା ଏତିକି ମୋର,          ପ୍ରାଣ ବୁଦ୍‌ବୁଦାକାର
ଭକ୍ତ ଲମ୍ଭ ତୁମ୍ଭର ଦେହରେ ଏକବାର
ହେଉ ପୁନବାର ଜନ୍ମ ହେ;          ନମିଣ ଯୋଡକର,,
କହେ ଚନ୍ଦ୍ର ଶେଖର । ୨ ।

——୦——

## ୩୧

( ନୂଆ ନଟ ପଟଲୀ ମୁକୁଟ ହେ

ଏହି ବୃତ୍ତରେ ।

କରୁଣା ସାଗର ଦୟିତାଶ ହେ   ନମଇଁ ତବ ପାଦତର,
ନମୁଅଛୁ ମୁହିଁ ବାରମ୍ବାର ତହିଁ   ଅତି ବିନମ୍ର ସାଦରେ । ପଦ।
ନାହିଁ ଜ୍ଞାନ ହୃଦେ ବୁଝିବାକୁ ମୁଦେ   ତବ ଅପାର ମହିମା
ମୁଁ ଅବା କ ଛାର ଶିବ ବଧି ପାର   ନ ଜାଣନ୍ତି ଗୁଣସୀମା ।୧।
ତୁମ୍ଭଙ୍କୁ ଭକତ କରିବା ଶକତ   ନାହି ମୋର ହୃଦସ୍ଥଳେ ।
କପଟ ବା ମୂଢ ଭକତେ କରନ୍ତି   ଜଣାନାହିଁ ମୋତେ ଛଳେ ।୨
ବିଷମ୍ଭ କଞ୍ଜାଳ ମଧ୍ୟରେ କେବଳ   ଘାଣ୍ଟି ହେଉଅଛୁ ମୁହିଁ ।
ବିନା ନମସ୍କାର ଅନ୍ୟ ଗତି ମୋର   ଏ ଜୀବନେ କିଛି ନାହିଁ ।୩।
ପତିତପାବନ ଦୁରିତନାଶନ   ତୁମ୍ଭେ ଅଧମ ତାରଣ ।
ମୋପରି ପତିତ ଜନ ଏ ଜଗତ   ମଧ୍ୟରେ ନାହାନ୍ତି ଜାଣ ।୪।
ଦେଖାଦିଅ ଦୟାକର ଭବସାମ୍ନା   ମୋର ଏବେ ଫିଟି ଯାଉ ।
ପଦ ଅରବିନ୍ଦେ ତବ ମହାନନ୍ଦେ   ଚନ୍ଦ୍ରର ମାନସ ଥାଉ । ୫ ।



## ୩୨

ହେ ସୁଜନେ, ସବୁଠାରେ ହିନ୍ତି ଭରା
ଦେଖ ହେ ସୁଜନେ । ହ୍ଲାଦାନନ୍ଦ ପସରା । ଘୋଷା ।

ସକଳ ଦେହ-ହୃଦରେ   ତରୁ ଲତାଦି ବଦରେ
ବହୁଛି ନିଖିବଦରେ   ସେ ସତ୍ୟ ଧାରା । ୧ ।

ଉଗନ କୁମୁଦ ବନ୍ଧୁ (୧) ତାରକ ଧରଣୀ ସିନ୍ଧୁ
ଲୀଳାମୟଙ୍କର ଖେଳା ଏ ସୃଷ୍ଟି ସାରା । ୨ ।
ଅରୁଣ ଉଦୟ କାଳେ ରବି ଅସ୍ତ ଯିବା ବେଳେ
ତାଙ୍କ ଚ୍ଛତ ସବୁ ଶୋଭେ ନୟନ କାରା(୨) । ୩ ।
କୋଟି ଜଗତ କାରଣ ଅଧମ ଜନ ତାରଣ
ହରନ୍ତୁ ଚନ୍ଦ୍ର ଶେଖର ଦୁରିତ ଭାରା । ୪ ।

—:—:—

# ୩୩

ରାଗ — କଲ୍ୟାଣୀ

ଦୀନବନ୍ଧୁ ଦୟିତ ଅରି ! କର ମୋତେ ଭବସାଗରୁ ପାର ।ଏଦ।
ଲଂଘିଛୁ ମୁଁ ତବ ଆଦେଶ କରିଅଛି ଦୋଷ ବିଶେଷ
ନିବିଷ୍ଟ ମନରେ ତୁମ୍ଭର ଧ୍ୟାନରେ
ଏକ ଦିନ ହେଲେ ନାହିଁ ମୁଁ ସାର । ୧ ।
ଅଘ-ବକ-କଂସ ଗୁଣ୍ଠିର ସବଶାଦ ଅସୁର ବୀର,
ହୋଇଥିଲେ ହେଁ ଉଗ୍ର ତବ କରେ ବଧ୍ୟ
ହୋଇ ସଂସାରୁ ଗଲେଟି ତରି । ୨ ।
ପୂର୍ବ ଜନମୁଁ ସଞ୍ଚିତ ପୁଣି ଇହକାଳରେ କୃତ
ଦୁରିତ ମୋହର ହେଲେହେଁ ଅପାର
ତୁମ୍ଭେ ତ ପତିତ ଦୁରିତ ହାରୀ । ୩ ।
ନ ତାରିଲେ କମଳାବର ଅକୀରତି ହେବ ତୁମ୍ଭର
ପତିତପାବନ ବ୍ରତର ବିଧାନ
ବୋଲେ ଚନ୍ଦ୍ର କାହୁଁ ରହିବ ହରି । ୪ ।

* — * — *

୧ — ଚନ୍ଦ୍ର । ୨—ନେତ୍ରର କେଲଖାନା, ଅର୍ଥାତ୍ ନେତ୍ର ସବୁ ବେଳେ ଯତ୍ନଁରେ ଲୀଖିଥାଏ ।

## ୩୪

ରାଗ—ପାହୁ ବସନ୍ତ

ଭଜମନ ବ୍ରଜବନ୍ଧୁ ଚିତ୍ତ-ହରଙ୍କୁ
ତେଜି ନିଜର ସେ ଘୋର ଭବଦରକୁ । ପଦ ।
ମସ୍ତକ ଚନ୍ଦ୍ରିକା ଚୂଳ ଜଗତ ଆନନ୍ଦ ମୂଳ
ଭୁବନ ଜନ ମୋହନ ବେଣୁଧରଙ୍କୁ । ୧ ।
ମଥୁରା ବିଜୟ କାଳେ ଗୋପବାଳ ବାଳା ମେଳେ
ପ୍ରେମମୟୀ ରାଧା ନେତ୍ର-ନୀର କରଙ୍କୁ । ୨ ।
ଧରଣୀର ଗୁରୁଭର ନିବାରଣେ ତତପର
ହୋଇ ବିନାଶିଲେ ଯେହ୍ନ ନିଶାଚରଙ୍କୁ । ୩ ।
ଅପାର ଦୁଃଖ ସାଗର ତରିବୁ, ମୋ ବୋଲ କର
ଚନ୍ଦ୍ରର ବାକ୍ୟେ ନକର ଅନାଦରକୁ । ୪ ।

————

## ୩୫

ରାଗ—କାମୋଦୀ

ହରେ ରାମ ଏ ମନ୍ତ୍ର ରସନ୍ତୁ ରେ, ରସନା ଶୋଷି ନାଶ ଶୋଷକୁ ରେ ।
ଅନବରତ ଘୋଷ (୧) ମନରେ ବହି
ତୋଷ ଶୁଣାଅ ମୋତେ ଯେହ୍ନ, ଘୋଷକୁ(୨) ରେ ।ପଦ।
ଯେ ମହାମନ୍ତ୍ର ବଳେ ଯମ କିଙ୍କର ଦଳେ
ଭରସି ନ ପାରନ୍ତି ପାଶକୁ ରେ ।
ଘୋର ଦୁରିତ ଗଣ ନ କରି ପାରି ତ୍ରାଣ
ଲଭନ୍ତି ଆପେ ଆପେ ନାଶକୁ ରେ । ୧ ।

---

୧—ଉଚ୍ଚାରଣ କର । ୨—ଧ୍ୱନି ।

ତୋର ସାହାଯ୍ୟ ବଳୁଁ          ଶତ୍ରୁରମ୍ଭ ଜଡଙ୍କୁଁ
ଏଡ଼ ଦିଅନ୍ତି ଜନେ ହାସକୁ ରେ ।
ଅନୁଗ୍ରହରୁ ତୋର          ସାଧୁ ଭକତ ନର
ନ ପାଏ ନରକରେ ବାସକୁ ରେ ।୩।

ମଧୁର ଦ୍ରବ୍ୟ ଦେଖି          ମୋଦ ଲଭେ ତୋ ଆଖି
ପ୍ରକାଶୁ ଅତଳସ୍ଥ ହାସକୁ ରେ ।
ମିଠା ପଦାର୍ଥମାନ          ଦେଖଅଛୁ ତୁ ଯେମନ
ଚନ୍ଦ୍ରର ପେଣ୍ଡ ଶମ୍ଭୁ ଗ୍ରାସକୁ ବେ । ୪ ।

## ୩୭

ନମସ୍ତେ ହରେ ନାମ ମୁରାର;
ଦୁରନ୍ତ ନାଶନ ଦମ୍ଭିତ ହରି, ହେ ।ଘୋଷା।

ଅଧମ ତାରଣ ଗଜ ଉଦ୍ଧାରଣ          ଭକତ ମନ୍ଦାର ବନ୍ଧୁ
ବଟଦ ଶ୍ଳେଷ ଦାରିଦ୍ର୍ୟ ଭଞ୍ଜନ          ଗୋପିକା ହୃଦୟ କୁମୁଦ ଇନ୍ଦୁ;
କରୁଣା ସିନ୍ଧୁ-ମଧୁସ୍ତୁ ବନ୍ଦୁ          ଦେଇଣ ପାଦୁ ବ୍ୟାଧର ତାରିଲ
କୁରଙ୍ଗ ବନ୍ଧୁ ହେ । ୧ ।

ଦୁରନ୍ତ ଦନୁଜ ହିରଣ୍ୟ ତନୁଜ          ପ୍ରହଲାଦ ଉଦ୍ଧାରୀ ।
ଜନକଙ୍କ ଅଙ୍କ ପାଇବାକୁ ରଙ୍କ          ବାଳକ ଧ୍ରୁବଙ୍କୁ ଦେଲ
ଉଦ୍ଧାରି, ଗରବକାରୀ,          ଶବରୀ-ଗୃଧ୍ର-ଗଣଙ୍କୁ ମାରି,
ଧରଣୀର ଭାର ଦେଲ ନିବାରି ହେ ।୨।

ରବି ଶଶୀ ଗ୍ରହ ତାରା ଉପଗ୍ରହ ଅନଳ ସିନ୍ଧୁ, ସରିତ
ନର, ପକ୍ଷୀ, କୀଟ, ପତଙ୍ଗ ମର୍କଟ ଆଦିରେ ପୂରିତ ଏହି ଜଗତ
ତୁମ୍ଭର କୃତ-କଳପନା ଜାତ ଅଟେ ସତତ ରକ୍ଷିତ ପୁଣି
ତୁମ୍ଭରେ ନାଶିତ ହେ । ୩ ।
ଅମଙ୍ଗଳକାରୀ ଶତ୍ରୁର ସଙ୍ଘାତ କ୍ରୋଧ ଆଦି ରିପୁ ଚୟ,
ତମି ଜନ୍ମରୂପେ ଦେଖାନ୍ତି ସ୍ୱରୂପେ, ଯହିଁରେ ସୃଷ୍ଟି ସକଳ ବିଷୟ(୧)
ସେ ଦୁଃଖମୟ, ଭବାବ୍ଧିଭୟ(୨) ହୋଇ ସଦୟ
ଚନ୍ଦ୍ରଶେଖରର କର ବିଳମ୍ବ ହେ ।୪।

— * —

## ୩୭

ରାଗ — ଭାଟିଆରୀ

ହେ କୃପାମୟ, ମୋ ମନ ହେଉନାହିଁ ଲବେ ଥୟ ।
କପରି ମୋହର ଯିବ ଭବ ଭୟ । ପଦ ।
କରି ନାହିଁ କେବେ ତବ ଧ୍ୟାନ,
କି ଅବା ପବିତ୍ର ଗୁଣ ଗାନ ।
ସଂସାର ସାଗର ହୋଇବାକୁ ପାର
ଜଟାନି ନାହିଁ ମୁଁ ତୁମ୍ଭେ ନାମ । ୧ ।

କର୍ମମୟ ଏହି ଜଗତରେ
ଧର୍ମକାର୍ଯ୍ୟ ଯେନ୍ତୁ ନ ଆଚରେ
ଭ୍ରମରେ ସେ ପଡ଼ ନରକରେ ସଦା
ପରଲୋକେ ଦୁଃଖ କାଳ ଭରେ । ୨ ।

---

୧—ସାଂସାରିକ ବିଷୟ । —ସଂସାର ରୂପ ସମୁଦ୍ରର ଭୟ ।

ଧରମ ଏହା ଅଟ୍ଟୁ ଜାଣି
ପରମ ପୁରୁଷେ ଭକ୍ତି, ପୁଣି ।
ଆପଣା ଆପଣା କର୍ତ୍ତବ୍ୟ ସାଧନା
କରିବା, ପଣ୍ଡିତେ ଛନ୍ତି ଭଣି । ୩ ।
ମୁହିଁ ଅଟେ ଅଜ୍ଞାନର ସିନ୍ଧୁ,
ଭକ୍ତି ନ ଜାଣଇଁ, ଦୀନବନ୍ଧୁ ।
ପରଲୋକ ହିତେ କରିନାହିଁ କୃତ୍ୟ
ରଖ ଚନ୍ଦ୍ରେ, ଦେଇ କୃପାବିନ୍ଦୁ । ୪ ।

—*○*—

୩୮

ଚମ୍ପୂର 'ଖ' ଗୀତ ବୃତ୍ତରେ

କଳାଗିରି ମୁଖ ଦେଖରେ ଲୋଚନ,
ପଡ଼ିବ ନାଚମ୍ବ ପ୍ରତି କି ସଦମ୍ଭ
ଗରୁଡ଼ ଖମ୍ବର ପାଖରେ । ପଦ ।
କଲୁଷ ଯୁକତ ଦ୍ରବ୍ୟରୁ କରତ
ହୋଇଣ ତହିଁରେ ଲଖ ।
ବିପଲ ମାନବ ପ୍ରତି ଦୟା ଭବ
ନାଶିଲେ ତହିଁନ୍ତୁ ଶିଖ ରେ । ୧ ।
ସେ ପଙ୍କଜ ଆଖି ଯୁଗଳରେ ଲକ୍ଷି
ମକରନ୍ଦ ବିନ୍ଦୁ ଗୃଖ ।
ଏକ ଧ୍ୟାନେ ରହି ଦେଖୁଥିଲେ ତୁହି
ନ ଲଗିବ ଶୋଷ ଭୋଖରେ । ୨ ।

ଅପାର ସଂସାର ଗମ୍ଭୀର ସାଗର
ଜଳେ ନ ଲଭିବୁ ଦୁଃଖ ।
ଆନନ୍ଦ ସରିତ ମଧ୍ୟରେ ମଜ୍ଜିତ
ହୋଇଣ ପାଇବୁ ସୁଖ ।୩।
ବନ୍ଦି ପାଦ ପଦ୍ମେ ଗୁରୁବର୍ଗ ସଦ୍ମେ (୧)
ମୋହର ମନକୁ ପୋଷ ।
ତୋର ଦୟା ବଳେ ନିଶ୍ଚେ ପିବ ହେଲେ
ଚନ୍ଦ୍ର ସକଳ ଦୁଃଖ ରେ । ୪ ।

—:୦:—

## ୩୯

ରାଗ—ପୂରବୀ ।

ରେ ମାନସ ସମ୍ଭାଳ ନ ପାରେ ଆଉ ।
କଣ୍ଠାଗତ ପ୍ରାଣ(୨) ଦମ୍ଭୋଳିରୁ
ତାଣ ପାପଗଣଙ୍କର ଦାଉ । ଘୋଷା ।
ଏତେକ କେବଳ ମୋହର ସମ୍ବଳ
ତୋହର ସାହାଯ୍ୟ ହେଉ ।
ତୋ ବଳରେ ତାଙ୍କ ସମସ୍ତ ଦମ୍ଭାଳ
ସମୂଳେ ବିନାଶ ପାଉ ।୧ ।
ସାଧୁ କାର୍ଯ୍ୟଚର୍ଯ୍ୟା-କରଣରେ ଭୟ
କଦାପି ତୋହର ନୋହୁ ।
ପରଲୋକେ ଭଲ ଗତିରେ କେବଳ
ତୋର ଦୃଢ଼ଭାବ ରହୁ । ୨ ।

---

୧—ଗୃହ । ୨—ଇନ୍ଦ୍ର ।

ତୋହର କୃପାରେ ଏବେ ମୋର ବାଟରେ
ଦୁଃଖ ଅମାନିଶା (୧) ପାଉ ।
ବିବେକ ବୈରାଗ୍ୟ ନାନା ଅଧିକାରୀ-
ମନ୍ତ୍ରକ ନିଚୟ୍ୟ ଖାଉ । ୩ ।
ମୋକ୍ଷର ଆଧାର ବିଭୁପାଦ
ଅରବିନ୍ଦେ ତୋର ଧ୍ୟାନ ଥାଉ ।
କୃପାମୟ ହରି ନାମକୁ ଉଚ୍ଚାରି
ଚନ୍ଦ୍ରର ଜୀବନ ଯାଉ । ୪ ।

—*○*—

# ୪୦

ରେ ମାନସ, ବିଷୟେ କାହିଁକି ରସୁ

ପଡ଼ିଛୁ ଭ୍ରମରେ କି ପରାକ୍ରମରେ ତରିବୁ ସଂସାର ପାଶୁ ।ପଦ।

କିଛିକାଳ ପରେ ଶମନ (୨) କିଙ୍କରେ
ନେଇଯିବେ ତୋତେ ଆସି ।
ସେତେବେଳେ ତବ ବୁଦ୍ଧି ନ ଦିଶିବ
ଭାବୁଥିବୁ ସିନା ବସି । ୧ ।
ଅସାର ସୁଖରେ ମାତି ପ୍ରମୋଦରେ (୩)
ସ୍ଥାୟୀ ସୁଖେ କରୁ ହେଳା ।
ସବୁଲେ ଆୟୁଷ ନ ପାଇବୁ ଲେଶ (୪)
ସମୟ ବୁଡ଼ିବ ବେଳା । ୨ ।

---

୧—ଅମାବାସ୍ୟାର ରାତି ପ୍ରଭାତ ହେଉ ଅର୍ଥାତ୍ ଦୁଃଖ ଅନ୍ଧକାର ଦୂର ହେଉ । ୨—ଯମ । ୩—ଆନନ୍ଦ । ୪—ଟିକିଏ ସମୟ ମଧ୍ୟ ।

ପୂର୍ବରୁ ଉପାୟ ଏବେ କର ଅୟ
ତରିବାକୁ ଭବଜଳ ।
ଜଗତ ଆଧାର କରୁଣାସାଗର
ପାଦ ଧ୍ୟାନ କର ମୂଳ । ୩ ।
ମୋହର ରହିତ ତଥା ଅବନତ
ତୋ ଠାରେ କରେ ନିର୍ଭର ।
ତୋର ସାହାଯ୍ୟରୁ ଏ ଦୁଃଖସାଗରୁ
ତରିବ ଚନ୍ଦ୍ରଶେଖର । ୪ ।

---

# ୪୧

ହରି ନାମ ଗାନ ଶୁଣ, ରେ ଶ୍ରବଣ ।
ଅପର ସଙ୍ଗୀତ ହେଲେ ହେଁ ଲଳିତ
ତହିଁ ଲଭ ନାହିଁ ଜାଣ, ରେ । ପଦ
ସାଧୁ ନର ଶତ୍ରୁ ହୁଅଇ ବହୁତ
ଯାହାର ପାଠେ, ଶ୍ରବଣେ ।
ତହିଁରେ ବରଗ (୧) ଲଭୁ ତୁ ସରଗ (୨)
ନକର କଦାପି ମନ, ରେ । ୧ ।
ହୃଦୟ ଆନନ୍ଦ ଦାୟକ ଗୋବିନ୍ଦ—
ଗୁଣ ମିଳିତ କୀର୍ତ୍ତନ ।
ତୋର ରସାୟନ (୩) ଜୀବନ ପାବନ (୪)
ଶୁଣ ସଦା ଦେଇ ଧ୍ୟାନ, ରେ । ୨ ।

---

୧—ବିରକ୍ତ । ୨—ସ୍ନେହ । ୩—ଆନନ୍ଦଦାୟକ ।
୪—ପବିତ୍ରକାରୀ ।

ପରେର ବିପଦ-ବେଗ ଅବସାଦ(୧)-
ଜନିତ କରୁଣ ନାଦେ ।
ଶୁଣିବାକୁ ତୁହି ତତପର ହୋଇ
ହେବ ହୋଇଥାଅ ମୁଦେ (୨), ରେ । ୩ ।
ତୋର ଆନୁକୂଲ୍ୟ ଯୋଗରେ ସାଫଲ୍ୟ
ଲଭିବ ମୋର ଜୀବନ ।
ଦ୍ୱିଜ ଚନ୍ଦ୍ର ଭଣେ ବିଭୁପାଦ ପାଶେ
ଲଭି ପାରିବ ମୁଁ ସ୍ଥାନ, ରେ । ୪ ।

---

୪୨

ଭକତ ସେହିଟି ମାନ, ରେ ମାନସ ।

ପଦ ଅରବିନ୍ଦେ ପରମ ଆନନ୍ଦେ
ଗୋବିନ୍ଦଙ୍କ ଦୃଢ଼ ଧ୍ୟାନ ରେ । ପଦ ।
ତାହାଙ୍କ ଆଦେଶ ପାଳନେ ବିଶେଷ
ଅଟେ ଭକତିର ଫଳ ।
ହୃଦୟ ନିର୍ମଳ ରଖିବା କେବଳ
ସେହି ଆଦେଶର ମୂଳ, ରେ । ୧ ।
ପର ଉପକାର କରିବା ତାଙ୍କର
ଅଟେ ଆଦେଶରେ ଯୋଖା ।
ସୁଜନ ସଙ୍ଗତ ଲଭିବା, ଭକତ
କରିବା ମଧ୍ୟରେ ଲେଖା, ରେ । ୨ ।

---

୧—ଦୁଃଖ । ୨—ଆନନ୍ଦରେ ।

ନିଜ ଲଭ ତ୍ୟାଗ ବିଷୟେ ବିରାଗ
ଅଟଇ ଭକତ ମତେଣ ।
ଯଥାଶକ୍ତି ଦାନ କରିବା ସମ୍ମାନ
ଦେଖାଇବା ଗୁଣୀ ଗଣ ରେ । ୩ ।
ଆଦେଶ ଲଙ୍ଘନ କରି ଘନ ଘନ
ହରିନାମ ଉଚ୍ଚାରିଲେ ।
କାଞ୍ଚିତ ଭକତ ନୋହିବ ପ୍ରାପତ
ଜାଣ ଦ୍ୱିଜ ଚନ୍ଦ୍ର ବୋଲେ ରେ ।୪ ।

———

## ୪୩

ଜନକଜା ଜାନି (୧) ! ଦନୁଜେନ୍ଦ୍ର ବିନାଶନ (୨) !
ରାମରାଜ ହେ । ଘୋଷା ।
ଜନମ କାଳରୁ ଅବଧି ବିଷମ-
ବିଷୟ-ଜଳଧି-ମଧ୍ୟରେ ମୁଁ ମଜ୍ଜି ମୂଢ଼ଧୀ
ବଗୃରୁଛି ତରିବାକୁ ଆଜ, ହେ । ୧ ।
ଜାଣିଥିଲି ଏହା କି ମୋତେ,
କଣା ପର ହେବ ମୁଁ ସତେ ।
ଦଣ୍ଡା ହେଲି ସଂସାର ପଥେ
ଝଣା ହେବ ଯମ ବୁଡେ ଆଜ ! (୩) ହେ । ୨ ।

---

୧—ଜନକଜା (ସୀତା) ଜାୟା ଯାହାଙ୍କର ଜନକଜାଜାନି ! (ସମ୍ବୋଧନ) ଅର୍ଥାତ ସୀତାପତି । ୨—ପ୍ରବଳ ଦୈତ୍ୟସମାନଙ୍କର ବିନାଶି କାରୀ । ୩—ଅଜ ବଂଶ ସମ୍ଭୂତ ହେ ରାମଚନ୍ଦ୍ର !

ଜଗତ ମଧ୍ୟରେ ଯାବତ
ଭକତ ଶରଧା--ଯୁକତ ।
ମୁକତକୁ ହେଲେ ପ୍ରାପତ
ସୁଗତି ଦାତା କିଏ ସେ ହେବ ହେ । ୩ ।
ଜପ ତପ ନ କଲି ବୋଲି
କୋପ ଯେବେ କରିବ ଖାଲି ।
ନିପଟ ମୁଁ ପତିତ ମଲି
ସ୍ମରଇ ବିକଳେ ଚନ୍ଦ୍ର ଦ୍ୱିଜ ହେ । ୪ ।

---

## ୪୪

ରାଗ—କେଦାରଭରଣ ।

ଅନାଦି ଅନନ୍ତ ଅଜ କରୁଣା ସାଗର,
ଅବିନାଶୀ ନିରାକାର ବାକ୍ୟ ଅଗୋଚର,
ଆହେ ଜଗତ ପାଳକ !
ନମଇଁ ମୁଁ ତବ ପଦେ ଅବୋଧ ବାଳକ ।୧।

ଯେ ତୁମ୍ଭଙ୍କୁ ଧ୍ୟାନ କରେ ଯେ ତୁମ୍ଭଙ୍କୁ ସ୍ମରେ,
ଯେ ତୁମ୍ଭଙ୍କୁ ଅବିରତ ନମେ ଭକ୍ତି ଭରେ,
ଆହେ ଜଗତ କାରଣ !
କର ତାହାଙ୍କର ଘୋର ଦୁଃଖ ନିବାରଣ । ୨ ।

ଭକତ ତୁମ୍ଭଙ୍କୁ ଭଲ ଲାଗୁଥାଏ ଯେଣୁ
ଭକ୍ତଚିତ୍ତ ଦୁଃଖହତ ଦୁରବର ତେଣୁ
ଆହେ ଭକ୍ତଜନ ବନ୍ଧୁ !
ଭକ୍ତ ଭାବି ମୋର ପାର ହେବ ଭବସିନ୍ଧୁ । ୩ ।

ଜ୍ଞାନ ବଳେ ଭକ୍ତି ବଳେ — ଯେଉଁ ବଳବାନ,
ଦୟା ବହୁ ତାଙ୍କୁ କର — ଅଭୟ ପ୍ରଦାନ,
ଆହେ ସଜ୍ଜନ ତାରକ !
ହୁଅ ପିନା ତାଙ୍କ ଭବ-ବନ୍ଧନ ହାରକ । ୪ ।

ସାଧୁକାର୍ଯ୍ୟ ଚୟ ଯୋଗେ — ଥାଏ ଅଧିକାର,
ଲଭିବାକୁ ସେମାନଙ୍କ — ମୋକ୍ଷ-ପୁରସ୍କାର,
ଆହେ ଅତୁଳ ଚଉର !
ସେମାନଙ୍କୁ ଉଦ୍ଧରିବା ନୁହଇ ବଡ଼ର । ୫ ।

ବକ୍ଷସ୍ଥ କାଳେ ମୁଁ ପଡ଼ — ଜ୍ଞାନ ଭକ୍ତି ହରା,
ଦୁର୍ବଳ ମୋ ହୃଦ ନାନା — ଦୁରିତରେ ଭରା;
ଆହେ ବିଶ୍ୱସୃଷ୍ଟି ସୁର !
ମୋତେ ଉଦ୍ଧରିଲେ ପିନା ତୁମ୍ଭ ବାହାଦୁର । ୬।

ପତିତ ପାବନ ବାନା — ଅଛି ତବ ବୋଲି
ନାଗରା ବାଜୁଛି, ମୁହିଁ — ଶୁଣୁଅଛି ଖାଲି,
ଆହେ ସର୍ବଦେବ ବନ୍ଦ୍ୟ !
ମୋତେ ନ ପାରିଲେ ତାରି, ତାହା ହେବ ନିନ୍ଦ୍ୟ ।୭।

ସେନ୍ହ ଗଜେ ଗ୍ରାହ ଗ୍ରାସ — କରୁଥିବା କାଳେ,
ଦ୍ରୌପଦୀ ଲଜ୍ଜା ସରିବେ — ବୁଡ଼ିଯିବା ବେଳେ
ଆହେ ବିପଦ ଗଞ୍ଜନ !
ଦୁଃଖ ହରିଲ ସୁଦାମା ଦାରିଦ୍ର୍ୟ ଭଞ୍ଜନ ! ।୮।

ପୁଣି ପତିତ ଉଦ୍ଧାରେ — ପ୍ରସାରିତ ହସ୍ତ
ହୋଇଅଛ, ହେଉଅଛ — ସେଥିପାଇଁ ବ୍ୟସ୍ତ

ଆହେ ଅଧମ ଭରସା !
ଘୋର ପତିତ ହେଲେ ହେଁ ମୋର ଅଛି ଆଶା ।୯।

ଅକ୍ଷମ ସନ୍ତାନ ପ୍ରତି ଦୟା ପିତାଙ୍କର,
ଅଧିକ ଥିବାର ଦେଖା- ଯାଏ ବରାବର

ଆହେ ଜଗତର ପିତା !
ଅବୋଧ ଚନ୍ଦ୍ରର ହୁଅ ଭବବନ୍ଧୁ ତାଣ ।୧୦ ।

---

ଉତ୍କଳ ପ୍ରିଣ୍ଟିଂ ପ୍ରେସ, ଆନନ୍ଦଚନ୍ଦ୍ର ଦାସଙ୍କ ଦ୍ୱାରା ମୁଦ୍ରିତ